ଉତ୍କୀର୍ଣ୍ଣ ଲିପିମାଳା—୧

# ଶ୍ରୀଅନନ୍ତବାସୁଦେବଶିଳାଲିପି ।


ଶ୍ରୀ ରାଧାକୃଷ୍ଣ ବସୁ, ଏମ, ଏ, ଙ୍କ ଦ୍ୱାରା
ଅନୂଦିତ ।



ଭୁବନେଶ୍ୱରକ୍ଷେତ୍ରବାସୀ
ପଣ୍ଡିତ ଶ୍ରୀରତ୍ନାକର ଗର୍ଗବଟୁଙ୍କ ଦ୍ୱାରା
ପ୍ରକାଶିତ ।

କଟକ, ଦତ୍ତ ପ୍ରେସରେ ମୁଦ୍ରିତ ।

CUTTACK.
Printed by H. M. Dutta.
at the Dutta Press,
1916.


ମୂଲ୍ୟ ୦ ୦ ୵ ମାତ୍ର ।

# ମୁଖବନ୍ଧ ।

ଭାରତବିଖ୍ୟାତ ଭୁବନେଶ୍ୱର-ମନ୍ଦିରର ନିକଟସ୍ଥ ପୁଣ୍ୟସଲିଳ ବିନ୍ଦୁ-ସାଗରର ପୂର୍ବତଟରେ ଶ୍ରୀଅନନ୍ତବାସୁଦେବଙ୍କ ମନ୍ଦିର ଅବସ୍ଥିତ ।

ଭବଦେବଙ୍କ କୁଳପ୍ରଶସ୍ତିର ସଂକ୍ଷିପ୍ତ ଇତିହାସ ।

ସିଦ୍ଧଳଗ୍ରାମବାସୀ ଭବଦେବଭଟ୍ଟ ଏହି ଶିଳ୍ପଚାତୁରୀପୂର୍ଣ୍ଣ ସୁବୃହତ୍ ମନ୍ଦିରକୁ ସୁଶୋଭିତ କରି ଶ୍ରୀଅନନ୍ତବାସୁଦେବଙ୍କ ପ୍ରତିଷ୍ଠା କରିଥିଲେ । ତାହାଙ୍କର ପ୍ରିୟ ମିତ୍ର ଶ୍ରୀବାଚସ୍ପତି ମିଶ୍ର ସମ୍ଭବତଃ ଦ୍ୱାଦଶ କିମ୍ବା ତ୍ରୟୋଦଶ ଶତାବ୍ଦିରେ ଏହି ପ୍ରଶସ୍ତି ରଚନା କରିଥିଲେ । ଏହା ଊନବିଂଶ ଶତାବ୍ଦିର ମଧ୍ୟଭାଗ ପର୍ଯ୍ୟନ୍ତ ମନ୍ଦିରର ଅଭ୍ୟନ୍ତରରେ ପରିରକ୍ଷିତ ହୋଇଥିଲା । ପରେ କଟୋସାହେବ ମେଘେଶ୍ୱରଲିପି ସହିତ ଏ ଖଣ୍ଡିକ ମଧ୍ୟ ପ୍ରାଚୀରଗାତ୍ରରେ ସନ୍ନିବିଷ୍ଟ କରି ଦେଲେ । ଏହି ଶିଳାଫଳକର ଆୟତନ, ଦୈର୍ଘ୍ୟରେ ଦୁଇହାତ ଚାରି ଅଙ୍ଗୁଳ ଏବଂ ପ୍ରସ୍ଥରେ ଏକ ହାତ ଦୁଇ ଅଙ୍ଗୁଳ ଅଟେ । ଏଥିରେ ସର୍ବମୋଟ ୨୫ ପଙ୍କ୍ତି ଉତ୍କୀର୍ଣ୍ଣ ହୋଇଅଛି । ଅକ୍ଷର ଗୁଡ଼ିକ ଏକ ଅଙ୍ଗୁଳ ପରିମିତ ଅଟେ ।

ମନ୍ଦିରସଂସ୍କାରର ପ୍ରୟୋଜନୀୟତା ।

ଶ୍ରୀଅନନ୍ତବାସୁଦେବଙ୍କ ମନ୍ଦିର ବହୁକାଳ ହେଲା ଉପଯୁକ୍ତରୂପେ ମରାମତ ହୋଇ ନ ଥିବାରୁ ଅବିଳମ୍ବେ ଏହାର ଜୀର୍ଣ୍ଣସଂସ୍କାର କରିବା ଅବଶ୍ୟକ ହୋଇଅଛି । ଏହାର କେତେଖଣ୍ଡିଏ କବାଟ ମରାମତ ବା ନବନିର୍ମିତ ହେବା ଆବଶ୍ୟକ । ବେଢ଼ା ମଧ୍ୟରେ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ମନ୍ଦିରକ

ଭଗ୍ନାବଶେଷ ମାତ୍ର ରହିଅଛି । ଏହି ମନ୍ଦିରଦ୍ୱୟ ପୁନର୍ନିର୍ମିତ ହେବା ଏକାନ୍ତ ଆବଶ୍ୟକ । ପୂର୍ବେ ମନ୍ଦିରର ପୂର୍ବ ଉତ୍ତର ପାର୍ଶ୍ୱରେ ଗୋଟିଏ ରମଣୀୟ ଉଦ୍ୟାନ ଥିଲା * । ତାହାର ମଧ୍ୟ ନବୀକରଣ ପ୍ରୟୋଜନ । ଏହି ସମସ୍ତ କାର୍ଯ୍ୟ ନିମିତ୍ତ ବହୁସହସ୍ର ଟଙ୍କା ଆବଶ୍ୟକ । ଭାରତର ପ୍ରସିଦ୍ଧ ଶିବକ୍ଷେତ୍ରରେ ଥିବା ବିଷ୍ଣୁମନ୍ଦିରଟିର ସର୍ବାଙ୍ଗୀନ ଉନ୍ନତି ବିଧାନ କରିବା ପ୍ରତ୍ୟେକ ହିନ୍ଦୁର ବିଶେଷତଃ ବୈଷ୍ଣବମାନଙ୍କର ସର୍ବତୋଭାବରେ କର୍ତ୍ତବ୍ୟ ଅଟେ । ପ୍ରତ୍ୟେକ ବ୍ୟକ୍ତି ଏହି ସଂସ୍କାର ନିମିତ୍ତ ଯଥାଶକ୍ତି ଦାନ କଲେ ଏହାର ସମସ୍ତ ଅଭାବ ଦୂର ହୋଇ ମନ୍ଦିରଟି ଅଚିରେ ଅପୂର୍ବ ଶ୍ରୀ ଧାରଣ କରିବ । ଆମ୍ଭମାନଙ୍କର ଏହି ପୁସ୍ତକର ବିକ୍ରୟଲବ୍ଧ ଅର୍ଥ ଶ୍ରୀଅନନ୍ତବାସୁଦେବଙ୍କ ମନ୍ଦିର ମରାମତି କାର୍ଯ୍ୟରେ ବ୍ୟୟିତ ହେବ । ଭବିଷ୍ୟତରେ ଆଉ କେତେକ ଖଣ୍ଡ ଉତ୍କୀର୍ଣ୍ଣଲିପି ପ୍ରକାଶ କରିବାର ବାସନା ରହିଲା । ଇତି ।

ପ୍ରକାଶକ ।

* ୩୬ ଶ୍ଳୋକ ଦେଖ ।

# ଶ୍ରୀଅନନ୍ତବାସୁଦେବଶିଳାଲିପି ।

ଓଁ ନମୋ ଭଗବତେ ବାସୁଦେବାୟ ।

ଗାଢ଼ୋପଗୂଢ଼କମଳାକୁଚକୁମ୍ଭପତ୍ର—
ମୁଦ୍ରାଙ୍କିତେନ ବପୁଷା ପରମ୍ପ୍ରମାନଃ ।
ମାଽଲୂଷ୍ୟତାମଭିନବା ବନମାଲକେତି
ବାଗ୍ଦେବତୋପହସିତୋସ୍ତୁ ହରିଃ ଶ୍ରିୟେ ବଃ । ୧ ।

ଯେ କମଳାଙ୍କୁ ଗାଢ଼ରୂପେ ଆଲିଙ୍ଗନ କରିବାରୁ ତାହାଙ୍କର କୁଚ-କୁମ୍ଭୋପରିସ୍ଥ ପତ୍ରାବଳୀରଚନା ଦ୍ୱାରା (ସ୍ୱୀୟ ବକ୍ଷଃସ୍ଥଳରେ ) ଅଙ୍କିତ ହୋଇ ପରେ ସରସ୍ୱତୀଙ୍କୁ ଆଲିଙ୍ଗନ କରିବାକୁ ଅଭିଳାଷୀ ହୁଅନ୍ତେ— " ତୁମ୍ଭର ଅଭିନବ ବନମାଳା ନଷ୍ଟ କର ନାହିଁ " ଏହା ବୋଲି ବାଗ୍ଦେବୀକର୍ତ୍ତୃକ ଉପହସିତ ହେଉଅଛନ୍ତି, ସେହି ହରି ତୁମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ୧ ।

ବାଲ୍ୟାତ୍ ପ୍ରଭୃତ୍ୟହରହର୍ଯଦୁପାସିତାସି
ବାଗ୍ଦେବତେ ତଦଧୁନା ଫଳତୁ ପ୍ରସୀଦ ।
ବକ୍ଷ୍ୟାମି ଭଟ୍ଟଭବଦେବକୁଳପ୍ରଶସ୍ତି—
ସୂକ୍ତାକ୍ଷରାଣି ରସନାଗ୍ରମଧିଶ୍ରୟେଥାଃ । ୨ ।

ହେ ବାଗ୍ଦେବି ! ମୁଁ ବାଲ୍ୟକାଳାବଧି ପ୍ରତ୍ୟହ ତୁମ୍ଭର ଯେଉଁ ଉପାସନା କରୁଅଛି ତାହା ବର୍ତ୍ତମାନ ଫଳବତୀ ହେଉ, ତୁମ୍ଭେ ମୋ ପ୍ରତି ଅନୁଗ୍ରହ କର । ମୁଁ ମଧୁର ପଦବିନ୍ୟାସପୂର୍ବକ ଭବଦେବ ଭଟ୍ଟଙ୍କର କୁଳପ୍ରଶସ୍ତି ବର୍ଣ୍ଣନ କରିବାକୁ ବସିଅଛି; ତୁମ୍ଭେ ମୋର ରସନାର ଅଗ୍ରଭାଗକୁ ଆଶ୍ରୟ କର । ୨ ।

ସାବର୍ଣ୍ଣସ୍ୟ ମୁନେର୍ମହାଯସି କୁଲେ ଯେ ଜଜ୍ଞିରେ ଶ୍ରୋତ୍ରିୟା-
ସ୍ତେଷାଂ ଶାସନଭୂମୟୋଽଜନି ଶ୍ଟହଂ ଗ୍ରାମାଃ ଶତଂ ସନ୍ତତେଃ ।
ଆର୍ଯ୍ୟାବର୍ତ୍ତଭୁବାଂ ବିଭୂଷଣମିହ ଖ୍ୟାତସ୍ତୁ ସର୍ବାଗ୍ରିମୋ
ଗ୍ରାମଃ ସିଦ୍ଧଲ ଏବ କେବଲମଲଙ୍କାରୋଽସ୍ତି ରାଢାଶ୍ରିୟଃ ।୩।

ସାବର୍ଣ୍ଣ ମୁନିଙ୍କର ସୁମହାନ୍ ବଂଶରେ ଯେ ସକଳ ଶ୍ରୋତ୍ରିୟ ବ୍ରାହ୍ମଣ ଜନ୍ମଗ୍ରହଣ କରିଥିଲେ, ସେମାନଙ୍କର ସନ୍ତାନସନ୍ତତିଗଣ ରାଜପ୍ରଦତ୍ତ ଏକଶତ ଗୋଷ୍ଠ ଗ୍ରାମରେ ବାସ କରୁଥିଲେ । ତନ୍ମଧ୍ୟରେ ଆର୍ଯ୍ୟାବର୍ତ୍ତ-ଭୂମିର ଭୂଷଣସ୍ୱରୂପ ସିଦ୍ଧଲ ଗ୍ରାମହିଁ ସର୍ବଶ୍ରେଷ୍ଠ ଏବଂ ସର୍ବତ୍ର ବିଖ୍ୟାତ ହୋଇ ରାଢ଼ଲକ୍ଷ୍ମୀର ଅଲଙ୍କାରସ୍ୱରୂପ ବର୍ତ୍ତମାନ । ୩ ।

ସତ୍ପକ୍ଷବଃ ସ୍ଥିରତମଯ୍ୟୋ ଦୃଢ଼ବଦ୍ଧମୂଲଃ
ଶାଖାଗ୍ରଲଗ୍ନମୁଖରଦ୍ବିଜଶୀଳଭଶ୍ରୀଃ ।
ନ ଗ୍ରନ୍ଥିଲୋ ନ କୁଟିଲଃ ସରଳଃ ସୁପର୍ବା
ସର୍ବୋନ୍ନତଃ ସୁଖମିହ ପ୍ରସସାର ବଂଶଃ । ୪ ।

ବଂଶ ଅର୍ଥାତ୍ ବାଉଁଶ ଯେପରି ସୁନ୍ଦର ପତ୍ରବିଶିଷ୍ଟ, ବହୁକାଳସ୍ଥାୟୀ, ଦୃଢ଼ମୂଳ, ଶାଖାଗ୍ରରେ ଶବ୍ଦାୟମାନ ପକ୍ଷିମାନଙ୍କର କୂଜନଦ୍ୱାରା ଶୋଭିତ, ଗଣ୍ଠି ରହିତ ସୁତରାଂ ସରଳ, ସୁନ୍ଦର ପର୍ବବିଶିଷ୍ଟ ଓ ସର୍ବୋନ୍ନତ ହୋଇ ବର୍ଦ୍ଧିତ ହୁଏ, ସେହିପରି ଏଠାରେ ବଂଶ ଅର୍ଥାତ୍ କୁଳ, ଶାଖାପ୍ରଶାଖା-ବିଶିଷ୍ଟ, ଦୀର୍ଘକାଳସ୍ଥାୟୀ, ଦୃଢ଼ବଦ୍ଧମୂଳ, ବେଦବେଦାଙ୍ଗପାଠୀ ବାଗ୍ମୀ ବ୍ରାହ୍ମଣମାନଙ୍କ ଦ୍ୱାରା ଶୋଭମାନ, ଛଳକୁଟିଳତା ବିରହିତ ସୁତରାଂ ସରଳସ୍ୱଭାବ, ବ୍ରତପୂଜାଦି ଧର୍ମକାର୍ଯ୍ୟ ନିରତ ଏବଂ ସର୍ବଶ୍ରେଷ୍ଠ ହୋଇ ବିସ୍ତାରିତ ହୋଇଥିଲା । ୪ ।

ତଦ୍‌ବଂଶୋତ୍ତଂସମଣିଃ ଫଳସ୍ୟ ଦାତାପି ତାପନପ୍ରତିମଃ ।
ଭବ ଇବ ବିଦ୍ୟାତନ୍ତ୍ରପ୍ରବଃ ପ୍ରବଭୂବ ଭବଦେବଃ । ୫ ।

ସେହି ବଂଶର ଶିରୋଭୂଷଣ ତୁଲ୍ୟ, ସମସ୍ତ ସଦାଶ୍ରିତମାନଙ୍କ ବାଞ୍ଛା-ପୂର୍ଣ୍ଣିକାରୀ ହେଲେ ମଧ୍ୟ ଦୁରାଶ୍ରିତଙ୍କ ପ୍ରତି ସୂର୍ଯ୍ୟସମ ତେଜସ୍ୱୀ ଅର୍ଥାତ୍ ଦୁର୍ଦ୍ଧର୍ଷ ଏବଂ ଶିବଙ୍କ ତୁଲ୍ୟ ବିବିଧ ବିଦ୍ୟାତନ୍ତ୍ରପ୍ରବର୍ତ୍ତକ ( ପ୍ରଥମ ) ଭବଦେବ ଜାତ ହେଲେ । ୫ ।

ଅଗ୍ରଜାନୁଜୟୋର୍ମଧ୍ୟେ ମହାଦେବାଣ୍ଟହାସୟୋଃ ।
ସ ଜଜ୍ଞେ ଯଜ୍ଞପୁରୁଷୋ ବ୍ରହ୍ମହରୟୋରିବ । ୬ ।

ବ୍ରହ୍ମା ଓ ହର ଏହି ଦୁହିଙ୍କ ମଧ୍ୟରେ ଯେପରି ଯଜ୍ଞପୁରୁଷ ( ହରି ), ଉତ୍ପନ୍ନ ହୋଇଥିଲେ ସେ ମଧ୍ୟ ସେହିପରି ମହାଦେବ ଏବଂ ଅଟ୍ଟହାସ ନାମରେ ଦୁଇ ଅଗ୍ରଜ ଓ ଅନୁଜଙ୍କ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ ।୬।

ସ ଶାସନଂ ଗୌଡ଼ନୃପାଦବାପ
ଶ୍ରୀହସ୍ତିନୀହଣ୍ଡ ମହାଷ୍ଟଭୂମିଃ ।
ଅଷ୍ଟୌମୁଖାନଷ୍ଟ ମହେଶମୂର୍ତ୍ତି—
ପ୍ରଖ୍ୟାନ୍ ବିଜଜ୍ଞେଽଥ ରଥାଙ୍ଗମୁଖ୍ୟାନ୍ । ୭ ।

ସେ ଗୌଡ଼ାଧିପତିଙ୍କଠାରୁ ଶ୍ରୀହସ୍ତିନୀ ନାମରେ ଗୋଟିଏ ଅତି ମନୋମତ ଶାସନ (ଗ୍ରାମ) ପ୍ରାପ୍ତ ହୋଇଥିଲେ । ଅନନ୍ତର ମହାଦେବଙ୍କର ଅଷ୍ଟମୂର୍ତ୍ତି ସଦୃଶ ରଥାଙ୍ଗ ପ୍ରମୁଖ ଆଠଗୋଟି ପ୍ରଧାନ ପୁତ୍ର ଉତ୍ପାଦନ କରିଥିଲେ । ୭ ।

ରଥାଙ୍ଗୋଽଦୟତ୍ତ୍ୱଃ ସମଜନି ଜନାନନ୍ଦଜନକଃ
ଶଶୀବ କ୍ଷୀରୋଦାଦବିକଲକଳାକେଳନିଲୟଃ ।
ସ୍ଫୁରଦ୍ରୂପଶ୍ଚାଜ୍ୟୋତିଃ ସ୍ଫୁରତି ଇତି ନାମ୍ନା ଦିଶି ଦିଶି
ପ୍ରକାଶୋଽଭୂତ୍ତସ୍ମୌମ୍ୟ ଗ୍ରହ ଇବ ବୁଧସ୍ତସ୍ୟ ତନୟଃ । ୮ ।

କ୍ଷୀରସମୁଦ୍ରରୁ ଚନ୍ଦ୍ରପରି ରଥାଙ୍ଗଙ୍କଠାରୁ ଲୋକମାନଙ୍କର ଆନନ୍ଦ ଜନୟିତା, ସମ୍ପୂର୍ଣ୍ଣ କଳା ଓ କେଳିର ନିଳୟସ୍ୱରୂପ ଅଭ୍ୟଙ୍ଗ ଜନ୍ମଗ୍ରହଣ

କରିଥିଲେ । ଚନ୍ଦ୍ରଙ୍କଠାରୁ ବୁଧଗ୍ରହ ପରି ବୁଧ ନାମରେ ତାହାଙ୍କର [ଅତ୍ରିଙ୍କର] ଗୋଟିଏ ପୁତ୍ର ହୋଇଥିଲା ଓ ଏହାଙ୍କର [ ବୁଧଙ୍କର ] ପ୍ରଜ୍ଞାପ୍ରଭା ବିଶେଷରୂପେ ସ୍ଫୁରିତ ବୋଲି ଏ ସ୍ଫୁରିତ ନାମରେ ସର୍ବତ୍ର ପ୍ରକାଶ ହୋଇଥିଲେ । ୮ ।

ତସ୍ମାଦଭୂଦଭିଜନାଭ୍ୟୁଦୟୈକବୀଜ—
ମବ୍ୟାଜପୌରୁଷମହାତରୁମୂଲକନ୍ଦଃ ।
ଶ୍ରୀଆଦିଦେବ ଇତି ଦେବ ଇବାଦିମୂର୍ତ୍ତି—
ର୍ମର୍ତ୍ତ୍ୟାତ୍ମନା ଭୁବନମେତଦଲଂକରିଷ୍ଣୁଃ । ୯ ।

ତାହାଙ୍କ ( ବୁଧଙ୍କ ) ଠାରୁ କୁଳଶ୍ରୀବୃଦ୍ଧିର ଏକମାତ୍ର କାରଣ, ଅକପଟ ପୁରୁଷକାରମହାତରୁର ମୂଳଗଣ୍ଡିସ୍ୱରୂପ, ମାନବରୂପରେ ଭୁବନର ଅଲଙ୍କାରକାରୀ ଭଗବାନ୍ ଆଦିଦେବଙ୍କପରି ଶ୍ରୀଆଦିଦେବ ଉତ୍ପନ୍ନ ହୋଇଥିଲେ । ୯ ।

ଯୋ ବଙ୍ଗରାଜରାଜ୍ୟଶ୍ରୀବିଶ୍ରାମ-ସଚିବଃ ଶୁଚିଃ ।
ମହାମନ୍ତ୍ରୀ ମହାପାତ୍ରମବନ୍ଧ୍ୟସନ୍ଧିବିଗ୍ରହୀ । ୧୦ ।

ଯେ ବଙ୍ଗାଧିପଙ୍କର ରାଜ୍ୟଲକ୍ଷ୍ମୀର ବିଶ୍ରାମସଚିବ, ମହାମନ୍ତ୍ରୀ, ମହାପାତ୍ର ଓ ଅବ୍ୟର୍ଥ ସନ୍ଧି-ବିଗ୍ରହୀ ଥିଲେ । ୧୦ ।

ସଦେବକୀଗର୍ଭଭବ ଭୂବସ୍ତିତୌ
ସମର୍ଥମୂର୍ତ୍ତେଃ ପଦଲବ୍ଧପୌରୁଷଂ ।
ସରସ୍ୱତୀଜାନିମଜୀଜନତ୍ ସୁତଂ
ଜଗତ୍ସୁ ଗୋବର୍ଦ୍ଧନମତ୍ୟୁଦ୍ଧାପମଂ । ୧୧ ।

ବିଷ୍ଣୁଙ୍କ ଭୂଲ୍ୟ ସେହି ଅଦଦେବଙ୍କର ପତ୍ନୀ ଦେବକୀଙ୍କ ଗର୍ଭରୁ ଗୋବର୍ଦ୍ଧନନାମକ ଜଗତରେ ଅତ୍ୟୁତ୍ତମାର ସ୍ତୁଲ ଏକ ପୁତ୍ର ଜାତ ହେଲେ । ବିଷ୍ଣୁ ଦେବକୀଗର୍ଭସମ୍ଭୂତ, ଭୂପାଳନସମର୍ଥ, ବାମନାବତାରରେ ଆକାଶ ପ୍ରଭୃତ ପଦବିସ୍ତାରଦ୍ୱାରା ପୌରୁଷପ୍ରାପ୍ତ, ସରସ୍ୱତୀବଲ୍ଲଭ; ପୁଣି ଗୋବର୍ଦ୍ଧନ, ଦେବକୀନାମ୍ନୀ ମାତାଙ୍କଠାରୁ ଜାତ, ରାଜ୍ୟଶାସନନିପୁଣ, ଉଚ୍ଚୋପାଧିଧାରଣ ହେତୁ ପ୍ରସିଦ୍ଧ ଓ ସରସ୍ୱତୀନାମ୍ନୀଜାୟାର ବଲ୍ଲଭ ଥିଲେ । ୧୧ ।

ଶୀରସ୍ଥଲୀଷୁ ଚ ସଭାସୁ ଚ ତାର୍କିକାନାଂ
ଦୋର୍ଲୀଳୟା ଚ କଳୟା ଚ ବଚସ୍ୱିନାଂ ଯଃ ।
ଯୋ ବର୍ଦ୍ଧୟନ୍ ବସୁମତୀଂ ଚ ସରସ୍ୱତୀଂ ଚ
ଦ୍ୱେଧା ବ୍ୟଧତ୍ତ ନିଜନାମପଦଂ ସଦର୍ଥଂ । ୧୨ ।

ଯେଉଁ ଗୋବର୍ଦ୍ଧନ ଶୀରସ୍ଥଳୀମାନଙ୍କରେ ସ୍ୱୀୟ ଭୁଜଦଣ୍ଡ ପରିଚାଳନାଦ୍ୱାରା ସ୍ୱରାଜ୍ୟବିସ୍ତାର ଏବଂ ସଭାମାନଙ୍କରେ ବାଗ୍ମୀ ପଣ୍ଡିତୋଚିତ ବାକ୍ନିପୁଣତା ଦ୍ୱାରା ବାଣୀଙ୍କର ଗୌରବ ବର୍ଦ୍ଧନ କରି ନିଜ ନାମକୁ ଗୋ ଅର୍ଥାତ୍ ଭୂମି ଓ ବାଣୀ ଉଭୟର ବର୍ଦ୍ଧକ ବୋଲି ସାର୍ଥକ କରିଥିଲେ ॥

ବନ୍ୟାଂ ବନ୍ୟଘଣ୍ଟୀଯୁସ୍ୟ ବ୍ରହ୍ମଣଃ ପ୍ରଥିତାଂ ସୁତାଂ ।
ସାଙ୍ଗାକାମଙ୍ଗନାରତ୍ନଂ ପତ୍ନୀଂ ସ ପରଣୀତବାନ୍ । ୧୩ ।

ସେ ବନ୍ୟଘଣ୍ଟୀ-କୁଳୋଦ୍ଭବ ଜନୈକ ବ୍ରାହ୍ମଣଙ୍କର ବନଜାୟା ଖ୍ୟାତା କନ୍ୟା ଅଙ୍ଗନାଶ୍ରେଷ୍ଠ ସାଙ୍ଗାକାର ପାଣିଗ୍ରହଣ କରିଥିଲେ । ୧୩ ।

ତସ୍ୟାଂ ସ୍ୱପ୍ନବଧାନବୋଧିତଜନେ‌ାତ୍ପାଦଃ ସ ଦେବୋ ହରେ—
ର୍ଜାତଃ ଶ୍ରୀଭବଦେବମୂର୍ତ୍ତିରମୁତଃ କ୍ଷ୍ମାମଣ୍ଡଳୀକଶ୍ୟପାତ୍ ।
ଯତ୍ପାଣିପ୍ରଣୟିତ୍ୱଯୁକ୍ତଲତୟୋର୍ଲକ୍ଷିତଂ ଲକ୍ଷ୍ମଣା
ଯସ୍ୟାର୍ନ୍ତନିହିତୋଽସ୍ତି କୌସ୍ତୁଭ ଇତି ଜ୍ଞାତଂ ପ୍ରକାଶୋଦୟାତ୍ ॥

ସ୍ୱପ୍ନରେ ନିଜ ଜନ୍ମ ଜ୍ଞାପନ କରି ଭଗବାନ୍ ହରି ଧରାମଣ୍ଡଳର କଶ୍ୟପରୂପୀ ଗୋବର୍ଦ୍ଧନଙ୍କଠାରୁ ସେହି ସାଙ୍ଗାକାଙ୍କ ଗର୍ଭରେ ଶ୍ରୀଭବଦେବ ମୂର୍ତ୍ତିରେ ଜନ୍ମଗ୍ରହଣ କରିଥିଲେ; ତଦ୍ଦ୍ୱାରା ପଦ୍ମଦ୍ୱୟ ଯାହାଙ୍କର ପାଣିଯୁଗଳର ପ୍ରଣୟୀ ବୋଲି ଲକ୍ଷିତ ହେଉଥିଲା, ଯାହାଙ୍କ ଅଙ୍ଗର ଜ୍ୟୋତିଃ-ପ୍ରକାଶ ଦ୍ୱାରା କୌସ୍ତୁଭ (ମଣି) ଅନ୍ତର୍ନିହିତ (ରହିଅଛି) ବୋଲି ସମସ୍ତେ ଜ୍ଞାତ ହେଉଥିଲେ । ୧୪ ।

ଲକ୍ଷ୍ମୀଂ ଦକ୍ଷିଣଦୋଷ୍ଣି ମନ୍ଦିରବରେ ବସୁମ୍ଭରାମଣ୍ଡଳଂ
ଜିହ୍ୱାଗ୍ରେ ଚ ସରସ୍ୱତୀଂ ଋଷ୍ଟିତନୌ ନାଗାନ୍ତକଂ ପକ୍ଷିଣଂ ।
ଚକ୍ରଞ୍ଚାବଦତଳେ ନିବେଶିତବତା ଦିବ୍ୟଂ ତଦାଦ୍ୟଂ ବପୁ—
ର୍ବିଭ୍ରାଣୁଦ୍ଭିଜଚତୁର୍ଷଭେତଦମୁନା ନୂନଂ ବିପର୍ଯ୍ୟାସିତଂ । ୧୫ ।

ସେ ଦକ୍ଷିଣ ହସ୍ତରେ ଲକ୍ଷ୍ମୀଙ୍କୁ, ମନ୍ଦିରବରରେ ଧରାମଣ୍ଡଳଙ୍କୁ, ଜିହ୍ୱାଗ୍ରରେ ସରସ୍ୱତୀଙ୍କୁ, ଶରୀରରେ ନାଗାନ୍ତକପକ୍ଷୀଙ୍କୁ * ଏବ

* ଭବଦେବଙ୍କ ପକ୍ଷରେ—ଶର; ବିଷ୍ଣୁଙ୍କ ପକ୍ଷରେ—ଗରୁଡ଼ ।

ପାଦତଳରେ ତନ୍ତ୍ରକୁ ସନ୍ନିବେଶିତ କରି ତାହାଙ୍କର ସେହି ଅଦ୍ୟ-ଦ୍ରବ୍ୟ-ଶସ୍ତ୍ରର ଗୋପନ କରିବା ନିମିତ୍ତ ନିଷ୍ପୃ ନିଜର ଏହି ଚତୁ ସମସ୍ତର ସ୍ଥାନବିପର୍ଯ୍ୟସ୍ତ କରାଇଥିଲେ । ୧୫ ।

ଯନ୍ମନ୍ତ୍ରଶକ୍ତିସଚିବଃ ସ୍ୱଚିରଂ ଚକାର
ରାଜ୍ୟଂ ସ ଧର୍ମବିଜୟୀ ହରିବର୍ମ୍ମଦେବଃ ।
ତନ୍ନନ୍ଦନେ ଚଳତି ଯସ୍ୟ ଚ ଦଣ୍ଡନୀତି—
ବର୍ତ୍ମାନୁଗା ବହୁଲକଳ୍ପଲତେବ ଲକ୍ଷ୍ମୀଃ । ୧୬ ।

ଯାହାଙ୍କର ମନ୍ତ୍ରଶକ୍ତିରୂପ ସଚିବାନ୍ୱିତ ହୋଇ ସେହି ଧର୍ମ୍ମବିଜୟୀ ରାଜା ହରିବର୍ମ୍ମଦେବ ବହୁକାଳ ରାଜତ୍ୱ କରିଥିଲେ, ଏବଂ (ତାହାଙ୍କର) ପୁତ୍ରଙ୍କ ସମୟରେ ମଧ ରାଜଲକ୍ଷ୍ମୀ ବହୁ ସଂଖ୍ୟକ କଳ୍ପଲତା ପରି ଯାହାଙ୍କର ଦଣ୍ଡନୀତି-ପଥର ଅନୁଗାମିନୀ ହୋଇ ଚଳୁଅଛନ୍ତି । ୧୬ ।

ସତ୍ପାତ୍ରସ୍ୟ ମହାଶୟସ୍ୟ କମଳାଧାରସ୍ୟ ଯସ୍ୟ କ୍ଷମାଂ
ବିଭ୍ରାଣସ୍ୟ ଗୁଣାମ୍ବୁଧେରକଳତସ୍ୟାନ୍ତର୍ମ୍ମଦୀନାତ୍ମନଃ ।
ମର୍ଯ୍ୟାଦାମହିମପ୍ରସାଦଶୁଚିତାଗାମ୍ଭୀର୍ଯ୍ୟଧୈର୍ଯ୍ୟସ୍ଥିତି—
ପ୍ରାୟାଃ ପ୍ରାୟଶଃ ଏବ ବାକ୍‌ପଥମତିକ୍ରାନ୍ତାଃ ସ୍ୱଦନ୍ତେ ଗୁଣାଃ ॥

ସତ୍ପାତ୍ର, ମହାଶୟ, ବିପୁଳବିଭବଶାଳୀ, କ୍ଷମାଶୀଳ (ଅଥଚ ପୃଥିବୀ ପାଳକ ) ସର୍ବଗୁଣରତ୍ନାକର, ଦୈନ୍ୟଶୂନ୍ୟଅନ୍ତଃକରଣବିଶିଷ୍ଟ ଯେଉଁ ଭବଦେବଙ୍କର ମର୍ଯ୍ୟାଦା, ମହିମା, ପ୍ରସନ୍ନତା, ପବିତ୍ରତା ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ, ଓ ସ୍ଥୈର୍ଯ୍ୟ ପ୍ରଭୃତି ବର୍ଣ୍ଣନାତୀତ ଗୁଣାବଳୀ ସମସ୍ତଙ୍କର ତୃପ୍ତିଭାଜନ ହୋଇଥିଲା । ୧୭ ।

ମହାଗୌରୀ କୀର୍ତ୍ତିଃ ସ୍ଫୁରଦସିକରାଳା ଭୁଜଲତା
ରଣ-କ୍ରୀଡ଼ା ଚଣ୍ଡୀ ରିପୁରୁଧିରଚର୍ଚ୍ଚା ରଣଭୁବଃ ।
ମହାଲକ୍ଷ୍ମୀର୍ମ୍ମୂର୍ତ୍ତିଃ ପ୍ରକୃତିଲଳିତାସ୍ତାଗିର ଇତି
ପ୍ରପଞ୍ଚଃ ଶକ୍ତୀନାଂ ଯମିହ ପରମେଶଂ ପ୍ରଥୟତି । ୧୮ ।

ଯେପରି ମହାଗୌରୀ, ଶାଣିତଖଡ୍ଗଧାରିଣୀ କାଳୀ, ରଣକ୍ରୀଡ଼ାକାରିଣୀଚଣ୍ଡୀ, ମହାଲକ୍ଷ୍ମୀ ଓ ସରସ୍ୱତୀ ଏହି ଶକ୍ତି ସମୂହ ପରମେଶ୍ୱରଙ୍କର ତ୍ରିମୂର୍ତ୍ତିର ପରିଚାୟକ, ସେହିପରି ଶୁଦ୍ଧ ଶୁକ୍ଳବର୍ଣ୍ଣବିଶିଷ୍ଟା କୀର୍ତ୍ତି ଉଜ୍ଜ୍ୱଳ ଅସିଯୁକ୍ତ ଭୟଙ୍କର ଭୁଜଲତା, ଭୀଷଣ ରଣକ୍ରୀଡ଼ାଦ୍ୱାରା ରିପୁରୁଧିରଚର୍ଚ୍ଚିତ ରଣସ୍ଥଳ, ସୁଶୋଭନମୂର୍ତ୍ତି, ସ୍ୱଭାବସୁନ୍ଦର ବାକ୍ୟାବଳି, ଯାହାଙ୍କୁ ଏହି ଧରାତଳରେ ପରମେଶ୍ୱର ବୋଲି ପ୍ରଥିତ କରିଥିଲା ॥

ଯଦ୍-ବ୍ରାହ୍ମତେଜସି ବଲୀୟସି ମନ୍ଦବୀର୍ଯ୍ୟଃ
ଖଦ୍ୟୋତପୋତତରଣଂ ତରଣିସ୍ତନୋତି ।
ଉଚ୍ଚୈରୁଦଞ୍ଚତି ଯଦୀୟଯଶଃଶରୀରେ
ଜାତସ୍ତୁଷାରଶିଖରୀ ନନୁ ଜାନୁଦଘ୍ନଃ । ୧୯ ।

ଯାହାଙ୍କର ପ୍ରଚଣ୍ଡ ବ୍ରହ୍ମତେଜଦ୍ୱାରା ସୂର୍ଯ୍ୟଦେବ ହୀନପ୍ରଭ ହୋଇ ଖଦ୍ୟୋତଶାବକପରି କ୍ଷୀଣ ଆଲୋକ ବିସ୍ତାର କରୁଥିଲେ ଏବଂ ଯାହାଙ୍କର ଯଶଃଶରୀର ଉଚ୍ଚରୂପେ ଉତ୍ଥିତ ହେବାରୁ ତୁଷାର ଶିଖରୀ [ ହିମାଦ୍ରି ] ମଧ୍ୟ ଜାନୁପ୍ରମାଣ ହୋଇଥିଲା । ୧୯ ।

ବ୍ରହ୍ମାଦ୍ୱୈତବଦାମୁଦାହରଣଭୂରୁଭ୍ଭୂତବଦ୍ୟାଭ୍ଭୂତ-
ପ୍ରଷ୍ଟା ଭଟ୍ଟଗିରାଂ ଗଭୀରମଗୁଣପ୍ରତ୍ୟକ୍ଷଦୃଶ୍ୱା କବଃ ।
ବୌଦ୍ଧାମ୍ଭୋନିଧିକୁମ୍ଭସମ୍ଭବମୁନିଃ ପାଷଣ୍ଡବୈତଣ୍ଡିକ-
ପ୍ରଜ୍ଞାଖଣ୍ଡନପଣ୍ଡିତୋଽଭୂମବନୌ ସର୍ବଜ୍ଞଲୀଳାଯୃତେ ।୨୦ ।

[ ଯେ ] ବ୍ରହ୍ମାଦ୍ୱୈତବଦ୍‌ମାନଙ୍କର [ଉତ୍ତର ମୀମାଂସାରେ] ଉଦାହରଣସ୍ଥଳ, ନ୍ୟାୟଶାସ୍ତ୍ରରେ ଅଭୂତପ୍ରଷ୍ଟା, ଭଟ୍ଟବାକ୍ୟାବଳୀର [ ପୂର୍ବ-ମୀମାଂସାର ] ଗଭୀରତାଗୁଣର ପ୍ରତ୍ୟକ୍ଷଦର୍ଶକ ଓ କବି, ବୌଦ୍ଧରୂପ ସମୁଦ୍ରର ଅଗସ୍ତ୍ୟମୁନି ଏବଂ ପାଷଣ୍ଡ ଓ ବୈତଣ୍ଡିକ ମାନଙ୍କର ପ୍ରଜ୍ଞା-ଖଣ୍ଡନରେ ପଣ୍ଡିତ ହୋଇ, ପୃଥିବୀତଳେ ସର୍ବଜ୍ଞପଦ ଲୀଳା କରୁଥିଲେ ॥

ସିଦ୍ଧାନ୍ତତନ୍ତ୍ରଗଣିତାର୍ଣ୍ଣବପାରଦୃଶ୍ୱା
ବର୍ଣ୍ଣାଭ୍ଭୂତପ୍ରସବତା ଫଳସଂହିତାସୁ ।
କର୍ତ୍ତା ସ୍ୱୟଂ ପ୍ରଥୟିତା ଚ ନବୀନହୋରା-
ଶାସ୍ତ୍ରସ୍ୟ ଯଃ ସ୍ଫୁଟମଭୂଦପରୋ ବରାହଃ । ୨୧ ।

ଯେ ସିଦ୍ଧାନ୍ତ, * ତନ୍ତ୍ର ଓ ଗଣିତରୂପ ଅର୍ଣ୍ଣବର ପାରଦର୍ଶୀ, ଫଳତ-ଜ୍ୟୋତିଷସଂହିତାରେ ବର୍ଣ୍ଣର ଅଭୂତ ପ୍ରସବତା, ନୂତନ ହୋରା—ଶାସ୍ତ୍ରର [ ଗଣିତଜ୍ୟୋତିଷ ] ପ୍ରଣେତା ଓ ପ୍ରଚାରକ ହୋଇ ସ୍ଫୁଟ-ରୂପରେ ଅପର ବରାହସ୍ୱରୂପ ହୋଇଥିଲେ । ୨୧ ।

---

* ଜ୍ୟୋତିଷର ପଞ୍ଚସିଦ୍ଧାନ୍ତ:—ବ୍ରହ୍ମ, ସୂର୍ଯ୍ୟ, ବଶିଷ୍ଠ, ରୋମକ ଓ ପୁଲିଶ ସିଦ୍ଧାନ୍ତ [ ଗଣବୋଧିନୀ ] ।

ଯୋ ଧର୍ମଶାସ୍ତ୍ରପଦବୀଷୁ ଜଗନ୍ନିବନ୍ଧା—
ନନ୍ଦୀଭଙ୍କାର ରଚତୋଚତସମ୍ପ୍ରବନ୍ଧଃ ।
ସୁବ୍ୟାଖ୍ୟାୟା ବଶଦୟନ୍ ମୁନଧର୍ମଗାଥାଃ
ସ୍ମାର୍ତ୍ତକ୍ରିୟାବଷୟସଂଶୟମୁନ୍ମମାର୍ଜ୍ଜ । ୨୨ ।

ଯେ ଧର୍ମଶାସ୍ତ୍ରପଦବୀରେ ସମୁଚତ ପ୍ରବନ୍ଧ ସମସ୍ତ ରଚନା କର ପୂର୍ବତନଶାସ୍ତ୍ରୀମାନଙ୍କୁ ଅକର୍ମଣ୍ୟ କର ଦେଇଥିଲେ ଏବଂ ବ୍ୟାଖ୍ୟାଦ୍ୱାରା ମୁନମାନଙ୍କର ଧର୍ମଗାଥା ସମସ୍ତ ବଶଦୀକୃତ କର ସ୍ମାର୍ତ୍ତ କ୍ରିୟା ବଷୟର ସଂଶୟରାଶି ଛିନ୍ନ କରଥିଲେ । ୨୨ ।

ମୀମାଂସାୟାମୁପାୟଃ ସ ଖଲୁ ବରଚତୋ ଯେନ ଭଟ୍ଟୋକ୍ତନୀତ୍ୟା
ଯତ୍ର ନ୍ୟାୟାଃ ସହସ୍ରଂ ରବକରଣସମା ନ କ୍ଷମନ୍ତେ ତମାଂସି ।
କିଂ ଭୂମ୍ନା ସୀମ୍ନି ସାମ୍ନାଂ ସକଳକବକଳାସ୍ୱାଗମେଷ୍ୱନ୍ୟ ଶାସ୍ତ୍ରେ-
ଷ୍ୱାୟୁର୍ବେଦାସ୍ତ୍ରବେଦପ୍ରଭୃତଷୁ କୃତଧୀରଦ୍ୱିତୀୟୋଽୟମେବ । ୨୩ ।

ଏ ଭଟ୍ଟଙ୍କ ପ୍ରବର୍ତ୍ତିତ ନୀତି ଅନୁସାରେ ପୂର୍ବମୀମାଂସା ଦର୍ଶନର ଏକ ଅପୂର୍ବ ପ୍ରକରଣଗ୍ରନ୍ଥ ରଚନା କରିଥିଲେ, ଯହିଁରେ ସହସ୍ର ସହସ୍ର ନ୍ୟାୟ ସନ୍ନିବିଷ୍ଟ ଥାଇ ସୂର୍ଯ୍ୟକିରଣ ଅନ୍ଧକାର ରାଶିକୁ ପ୍ରତିହତ କଲା ପରି ଅଜ୍ଞାନର ପ୍ରଭାବ ବିନଷ୍ଟ କରିବାକୁ ସକ୍ଷମ ଅଟେ । ଅଧିକ କି; ଏ ସାମବେଦର ଉପନିଷଦ ଭାଗରେ, ସମସ୍ତ କବିକଳାରେ, ଆଗମରେ, ଆୟୁର୍ବେଦ ଏବଂ ଅସ୍ତ୍ରବେଦ ପ୍ରଭୃତି ସମୁଦାୟ ଶାସ୍ତ୍ରରେ କୃତବିଦ୍ୟ ହୋଇ ଜଗତରେ ଅଦ୍ୱିତୀୟ ହୋଇଥିଲେ । ୨୩ ।

ଯସ୍ୟ ଖଳୁ ବାଲବଲଭିଦ୍ଭୁଜଙ୍ଗ ଇତି ନାମ ନାଦ୍ଭୁତଂ କେନ ?
ମୀମାଂସଯ୍ୟାପି ସପୁଲକମାକର୍ଣ୍ଣିତବର୍ଣ୍ଣିତୋଦ୍ଗୀତଂ । ୨୪ ।

ଯାହାଙ୍କର 'ବାଲବଲଭିଦ୍ଭୁଜଙ୍ଗ' ଏହି ନାମଟି କାହାର ନିକଟରେ ଅଦ୍ଭୁତ ନ ହୋଇଅଛି ? ମୀମାଂସାରେ ମଧ୍ୟ ଏହି ନାମଟି ସପୁଲକରେ ଆକର୍ଣ୍ଣିତ, ବର୍ଣ୍ଣିତ ଏବଂ ଉଦ୍‌ଗୀତ ହୋଇଅଛି । ୨୪ ।

ଦଂଷ୍ଟ୍ରାଳଦୁଷ୍ଟଭୁଜଗବ୍ରଣମୋହରାତ୍ରି—
ପ୍ରତ୍ୟୁଷତୂର୍ଯ୍ୟନିନଦୈରିବ ମନ୍ତ୍ରବର୍ଣ୍ଣୈଃ ।
ଯୋ ଜୀବୟନ୍ ଜଗଦଶେଷମଭୂଦପୂର୍ବଂ
ମୃତ୍ୟୁଞ୍ଜୟୋ ଗରଳକେଳିଷୁ ନୀଳକଣ୍ଠଃ । ୨୫ ।

ଉତ୍କଟ ବିଷଦନ୍ତଯୁକ୍ତ କ୍ରୂର ସର୍ପମାନଙ୍କର ଦଂଷନଜନିତ ଯେଉଁ ମୋହରାତ୍ରି ଅର୍ଥାତ୍ ଅଚେତନାବସ୍ଥା, ତାହାର ଦୂରୀକରଣ ବିଷୟରେ ନିଶାବସାନ ସୂଚକ ତୂର୍ଯ୍ୟନିନାଦ ତୁଲ୍ୟ ମନ୍ତ୍ରବର୍ଣ୍ଣମାନଙ୍କଦ୍ୱାରା ଯେଉଁ ଉଦ୍‌ଦେବ ସମସ୍ତ ସଂସାରକୁ ଆଶ୍ଚର୍ଯ୍ୟରୂପେ ଜୀବିତ କରାଇ ଅବଲୀଳାକ୍ରମେ ଗରଳ ବ୍ୟବହାର କରି ମୃତ୍ୟୁଞ୍ଜୟକାରୀ ସ୍ୱୟଂ ଶିବଙ୍କ ତୁଲ୍ୟ ହୋଇଥିଲେ । ୨୫ ।

ରାଢ଼ାୟାମଜଲାସୁ ଜାଙ୍ଗଲପଥଗ୍ରାମୋପକଣ୍ଠସ୍ଥଳୀ—
ସୀମାସୁ ଶ୍ରମମଗ୍ନପାନ୍ଥପରଷପ୍ରାଣାଶୟପ୍ରୀଣନଃ ।
ଯେନାକାରି ଜଳାଶୟଃ ପରସରସ୍ନାତାଭିଜାତାଙ୍ଗନା—
ବକ୍ତ୍ରାବ୍ଜପ୍ରତିବିମ୍ବମୁଗ୍ଧମଧୁପୀଶୂନ୍ୟାବ୍ଜିନୀକାନନଃ । ୧୬ ।

ଯେ ରାଢ଼ଦେଶର ଜଳଶୂନ୍ୟ ଜଙ୍ଗଲପଥରେ, ଗ୍ରାମର ଉପକଣ୍ଠରେ ଓ ସୀମାସ୍ଥାନସମୂହରେ ଶ୍ରାନ୍ତପାନ୍ଥମାନଙ୍କର ପ୍ରାଣତୃପ୍ତିକର ଜଳାଶୟମାନ ଖୋଲାଇଥିଲେ, ଯାହାର ଘାଟମାନଙ୍କରେ ସ୍ନାନ କରୁଥିବା କୁଳାଙ୍ଗନାମାନଙ୍କର ପ୍ରତିବିମ୍ବିତ ମୁଖପଦ୍ମଦ୍ୱାରା ଭ୍ରମରୀମାନେ ଆକୃଷ୍ଟ ହୋଇ ଆସିବାରୁ ସେହି ଜଳାଶୟମଧ୍ୟସ୍ଥିତ ପଦ୍ମିନୀ ବନ ଭ୍ରମରୀଶୂନ୍ୟ ହୋଇଥିଲା । ୧୬ ।

ତେନାୟଂ ଭଗବାନ୍ ଭବାର୍ଣ୍ଣବସମୁତ୍ତାରାୟ ନାରାୟଣଃ
ଶୈଲୈଃ ସେତୁରିବ ପ୍ରସାଧିତଧରାପୀଠଃ ପ୍ରତିଷ୍ଠାପିତଃ ।
ଯଃ ପ୍ରାଚୀବଦନେନ୍ଦୁନୀଲତିଲକୋ ଲୀଳାବତଂସୋତ୍ପଲଃ
ଭୂମେର୍ଭୂତଲପାରିଜାତବିଟପୀ ସଙ୍କଳ୍ପସିଦ୍ଧିପ୍ରଦଃ । ୧୭ ।

(ସେ) ଭବସମୁଦ୍ର ପାର ହେବାର ଶିଳାନିର୍ମିତ ସେତୁପରି ଭୂପୃଷ୍ଠର ଅଳଙ୍କାରରୂପୀ ଭଗବାନ୍ ନାରାୟଣଙ୍କୁ ପ୍ରତିଷ୍ଠା କରାଇଥିଲେ; ଯେ [ ଭଗବାନ୍ ] ପ୍ରାଚୀଦିଗର ବଦନେନ୍ଦୁର ନୀଳବର୍ଣ୍ଣତିଳକ, ଭୂମିର ଲୀଳାବତଂସ ଉତ୍ପଳ, ସର୍ବସଙ୍କଳ୍ପପ୍ରଦ ଓ ଭୂତଳର ପାରିଜାତବୃକ୍ଷସ୍ୱରୂପ ଅଟନ୍ତି । ୧୭ ।

ତେନ ପ୍ରାସାଦ ଏଷ ତ୍ରିପୁରହରଗିରଶର୍ବ୍ଯ୍ୟା ବର୍ଦ୍ଧିତଶ୍ରୀଃ
ଶ୍ରୀମାନ୍ ଶ୍ରୀବତ୍ସଲକ୍ଷ୍ମା ହରିରିବ ବହୁତୋ ବପ୍ରରଚନଚତ୍ରଃ ।
ଜିତ୍ୱା ଯୋ ବୈଜୟନ୍ତଂ ବସତି ବତନୁତେ ବୈଜୟନ୍ତୀବିଲାସାନ୍
କୈଳାସେ ନାଭିଲାଷଂ କଲୟତି ଗିରିଶୋ ଯସ୍ୟ ସଲକ୍ଷ୍ୟ ଲକ୍ଷ୍ମୀଂ ॥

ସେ ଏହି ପ୍ରାସାଦକୁ କୈଳାସପର୍ବତର ସହିତ ସ୍ପର୍ଦ୍ଧାକରି ବର୍ଦ୍ଧିତଶ୍ରୀ ଏବଂ ଶ୍ରୀବତ୍ସଲାଞ୍ଛନ ହରିଙ୍କ ପରି ଶ୍ରୀମାନ୍ ଓ ଚକ୍ରଚତ୍ରପରିଶୋଭିତ କରିଥିଲେ; ଯେଉଁ [ପ୍ରାସାଦ] ବୈଜୟନ୍ତ [ଇନ୍ଦ୍ରପୁରୀ] ଜୟ କରି ଆକାଶ ମାର୍ଗରେ ବିଜୟପତାକାର ଶୋଭା ବିସ୍ତାର କରୁଅଛି ଏବଂ ଯାହାର ଶ୍ରୀ ସନ୍ଦର୍ଶନ କରି ମହାଦେବ କୈଳାସରେ ମଧ୍ୟ ଅଭିଲାଷ କରନ୍ତି ନାହିଁ । ୨୮ ।

ନ୍ୟଧାବିଶଦ୍ୱେଶ୍ମନି ତତ୍ର ବିଷ୍ଣୋଃ
ସ ନର୍ଭରଂ ଗର୍ଭଗୃହାନ୍ତରେଷୁ ।
ନାରାୟଣାନନ୍ତନୃସିଂହମୂର୍ତ୍ତି—
ର୍ଦ୍ଧାତୁର୍ବକ୍ତ୍ରେଷ୍ୱିବ ବେଦବିଦ୍ୟାଃ । ୨୯ ।

ସେ ସେହି ପ୍ରାସାଦର ଗର୍ଭଗୃହମଧ୍ୟରେ ବ୍ରହ୍ମାର ମୁଖ ସମୂହରେ ବେଦବିଦ୍ୟାପରି [ବେଦତ୍ରୟୀ ପରି] ଭଗବାନ୍ ବିଷ୍ଣୁଙ୍କର ନାରାୟଣ, ଅନନ୍ତ ଓ ନୃସିଂହ ଏହି ତନୋଟି ମୂର୍ତ୍ତି ସଂସ୍ଥାପନ କରିଥିଲେ । ୨୯ ।

ଏତସ୍ମିନ୍ ହରିମେଧସେ ବସୁମତୀବଣ୍ଟାନ୍ତବିଦ୍ୟାଧରୀ—
ବିଭ୍ରାନ୍ତଂ ଦଧତୀଃ ଶତଂ ସ ହି ଦଦୌ ଶାରଙ୍ଗଶାବୀଦୃଶଃ ।
ଦଗ୍ଧସ୍ୟାପ୍ରଦୃଶା ଦୃଶୈବ ଦଧତୀଃ କାମସ୍ୟ ସଞ୍ଜୀବନଂ
କାରାଃ କାମିଜନସ୍ୟ ସଙ୍ଗମଗୃହଂ ସଙ୍ଗୀତକେଳିଶ୍ରିୟଃ ॥

ସେ ଇନ୍ଦ୍ରସମ ଭୋଗାଭିଳାଷୀ ସେହି ହରିଦେବଙ୍କୁ ପୃଥିବୀରେ ବଣ୍ଟା-
ମାତ୍ର ଅଗତ ବିଦ୍ୟାଧରୀ-ସଦୃଶ ଏକଶତ ମୃଗନୟନା ଲଳନା ତାଙ୍କର
ସେବା ନିମନ୍ତେ ଦାନ କରିଥିଲେ । ଏମାନେ [ଭଗବାନ୍] ତ୍ରିନୟନ-
କର୍ତ୍ତୃକ ଭସ୍ମୀକୃତ ମଦନଙ୍କୁ ମଧ କଟାକ୍ଷପାତରେ ଉଜ୍ଜୀବିତ କରିବାକୁ
ସକ୍ଷମ ଏବଂ କାମୁକମାନଙ୍କର କାରାଗାର ସ୍ୱରୂପା ଓ ମନୋ-
ହର ସଙ୍ଗୀତକ୍ରୀଡ଼ାର ଆଧାରଭୂମି । ୩୦ ।

ପ୍ରାସାଦାଗ୍ରେ ସ ଖଳୁ ଜଗତଃ ପୁଣ୍ୟପଣ୍ୟୈକବୀଥୀଂ
ଚକ୍ରେ ବାପୀଂ ମରକତମଣିସ୍ୱଚ୍ଛସୁଚ୍ଛାୟତୋୟାଂ ।
ମଧ୍ୟେ ବାରିପ୍ରତିକୃତିମିଷାଦର୍ଶୟନ୍ତୀବ ତାଦୃକ୍
ବକ୍ଷୋର୍ଯୀମାଭୂତମହହକୁଳସ୍ୟାଧିକଂ ଯା ତକାପେ । ୩୧ ।

ସେ ସେହି ପ୍ରାସାଦର ସମ୍ମୁଖସ୍ଥ ଜାଗତିକପୁଣ୍ୟର ଏକମାତ୍ର
ବିପଣି ସ୍ୱରୂପ ପୁଷ୍କରଣୀକୁ ମରକତମଣିସଦୃଶ ନିର୍ମଳ-ସୁଚ୍ଛାୟ-ଜଳ-
ଶାଳିନୀ କରାଇଥିଲେ । ଏହା ଜଳ ମଧ୍ୟରେ ପ୍ରତିବିମ୍ବିତ ମନ୍ଦିରଛାୟା

ଛଳରେ ପାତାଳଲୋକରେ ଥିବା ନାଗମାନଙ୍କ ବସ୍ତୁଙ୍କର ସେହି-
ପରି ଗୋଟିଏ ଅଭୂତ ଧାମ ଦେଖାଇ ସମ୍ୟକରୂପେ ଶୋଭିତ
ହୋଇଥିଲା । ୩୧ ।

ବ୍ୟଧିତ ବିବୁଧଧାମ୍ନଃ ସୀମ୍ନି ସଂସାରସାରଂ
ସ ଖଲୁ ନିଖିଳନେତ୍ରାନନ୍ଦନସ୍ୟନ୍ଦପାତ୍ରଂ ।
ତ୍ରିଭୁବନଜୟଖିନ୍ନାନଙ୍ଗବିଶ୍ରାମଧାମ
ପ୍ରଥିତରତିବିଭବସ୍ଥାନମୁଦ୍ୟାନରତ୍ନଂ । ୩୨ ।

ସେ ସେହି ଦେବପ୍ରାସାଦର ସମୀପରେ ସଂସାରର ସାରସ୍ୱରୂପ ଗୋଟିଏ ଉଦ୍ୟାନରତ୍ନ ପ୍ରସ୍ତୁତ କରିଥିଲେ; ଏହା ସମସ୍ତ ମନୁଷ୍ୟଙ୍କର ନେତ୍ର-ଆନନ୍ଦ-ଝରଣର ପାତ୍ର, ପରମରତିଉଦ୍ଦୀପକ ଏବଂ ତ୍ରିଭୁବନ-ଜୟଦ୍ୱାରା କ୍ଲାନ୍ତ ଅନଙ୍ଗର ବିଶ୍ରାମସ୍ଥାନ ଅଟେ । ୩୨ ।

ତସ୍ୟୈବ ପ୍ରିୟସୁହୃଦା ଦ୍ୱିଜାଗ୍ରିମେଣ
ଶ୍ରୀବାଚସ୍ପତିକବିନା କୃତା ପ୍ରଶସ୍ତିଃ ।
ଅକଲ୍ପଂ ଶୁଚିସଦନେ ସୁମୂର୍ତ୍ତିକାନ୍ତି—
ରଧ୍ୟାସ୍ତାଂ ଜଘନମିୟଂ ସୁବର୍ଣ୍ଣକାଞ୍ଚୀ । ୩୩ ।

ତାହାଙ୍କର ପ୍ରିୟସୁହୃଦ୍ ଦ୍ୱିଜଶ୍ରେଷ୍ଠ ଶ୍ରୀବାଚସ୍ପତିକବିକର୍ତ୍ତୃକ ଏହି ପ୍ରଶସ୍ତି ବିରଚିତ ହୋଇଅଛି । ଏହି ପ୍ରଶସ୍ତି ସୁବର୍ଣ୍ଣ କାଞ୍ଚୀର ତୁଲ୍ୟ ପବିତ୍ର

ପ୍ରାସାଦରୂପ ଜଘନରେ ସୁମୂର୍ତ୍ତି ଓ ସୁନ୍ଦର କୀର୍ତ୍ତିସ୍ୱରୂପ କଳ୍ପପର୍ଯ୍ୟନ୍ତ ଅବ-
ସ୍ଥିତ ହେଉ । ୩୩ ।

* * * *

ପ୍ରଶସ୍ତିରୟଂ ବାଲବଲ୍ଲଭୀଭୁଜଙ୍ଗା—
ପରନାମ୍ନୋ ଭଟ୍ଟଶ୍ରୀଭବଦେବସ୍ୟ । ୩୪ ।

* * * *

ବାଲବଲ୍ଲଭୀଭୁଜଙ୍ଗ ଅଖ୍ୟାଧାରୀ ଭଟ୍ଟଭବଦେବଙ୍କର ଏହି ପ୍ରଶସ୍ତି ।୩୪।



ପ୍ରଶସ୍ତିର ସାରମର୍ମ୍ମ ।

ସାବର୍ଣ୍ଣଗୋତ୍ରର ଶ୍ରୋତ୍ରିୟମାନେ ରାଜାଙ୍କଠାରୁ ଅନେକ ଗୁଡ଼ିଏ ଗ୍ରାମ ଦାନ ପାଇଥିଲେ । ସେମାନଙ୍କମଧ୍ୟରେ ସିଦ୍ଧଳ ଗ୍ରାମ ପ୍ରଥମ ଅଟେ । ଏହି ଗ୍ରାମରେ ମହାଦେବ, ଭବଦେବ ( ୧ମ ) ଓ ଅଟ୍ଟହାସ ନାମରେ ତିନିଜଣ ମହାତ୍ମା ଜନ୍ମଗ୍ରହଣ କରିଥିଲେ । ଏମାନଙ୍କ ମଧ୍ୟରେ ଭବଦେବ ବିଦ୍ୟା ବୁଦ୍ଧିରେ ଶ୍ରେଷ୍ଠ ଥିଲେ । ଏହି ମହାତ୍ମା ଗୌଡ଼ାଧିପଙ୍କଠାରୁ ହସ୍ତିନୀ ଗ୍ରାମ ପାଇଥିଲେ । ଏହାଙ୍କଠାରୁ ରଥାଙ୍ଗ ପ୍ରଭୃତି ଆଠଗୋଟି ପୁତ୍ର ଜାତ ହୋଇଥିଲେ । ରଥାଙ୍ଗଙ୍କ ପୁତ୍ର ଅତ୍ୟଙ୍ଗ, ତାହାଙ୍କ ପୁତ୍ର ବୁଧ ଅଟନ୍ତି । ବୁଧଙ୍କ ପୁତ୍ର ଆଦିଦେବ ବଙ୍ଗାଧିପଙ୍କର ପ୍ରଧାନ ମନ୍ତ୍ରୀ ଥିଲେ । ଆଦିଦେବଙ୍କ ପୁତ୍ର ଗୋବର୍ଦ୍ଧନ, ବନ୍ଦ୍ୟଘଟୀ କୁଳୋ-ଭବା ଏକ ଧାର୍ମିକାର ପାଣିଗ୍ରହଣ କରିଥିଲେ । ତାହାଙ୍କ ଗର୍ଭରୁ ପଣ୍ଡିତପ୍ରବର ( ଦ୍ୱିତୀୟ ) ଭବଦେବ ଜାତ ହୋଇଥିଲେ । ଏହି ଭବଦେବଙ୍କ ମନ୍ତ୍ରଣାବଳରେ ହରିବର୍ମ୍ମଦେବ ଓ ତତ୍ପୁତ୍ର ବହୁକାଳ ରାଜ୍ୟଲକ୍ଷ୍ମୀ ଭୋଗ କଲେ । ଭବଦେବ, ସିଦ୍ଧାନ୍ତ, ତନ୍ତ୍ର, ଗଣିତ ଓ ଆୟୁର୍ବେଦରେ ପାରଦର୍ଶୀ ଥିଲେ । ସେ ନୂତନ ଜ୍ୟୋତିଷଶାସ୍ତ୍ର, ମୀମାଂସା ଶାସ୍ତ୍ର ଓ ନ୍ୟାୟଶାସ୍ତ୍ର ପ୍ରଣୟନ କରିଥିଲେ । ସେ ରାଢ଼ ଦେଶର ନାନା ସ୍ଥାନରେ ଜଳାଶୟମାନ ଖୋଳାଇ ଦେଇଥିଲେ । ଏହି ମହାତ୍ମା ଅନନ୍ତବାସୁଦେବଙ୍କ ମୂର୍ତ୍ତି ପ୍ରତିଷ୍ଠା କରି ମନ୍ଦିର ମଧ୍ୟରେ ପ୍ରବେଶ କରାଇଥିଲେ ଏବଂ ବିନ୍ଦୁସାଗରର ପଙ୍କୋଦ୍ଧାର କରାଇଥିଲେ । ଭବଦେବଙ୍କର ଅପର ନାମ ବାଳବଲଭୀଭୁଜଙ୍ଗ ଅଟେ । ତାହାଙ୍କର ପ୍ରିୟ ମିତ୍ର କବି ଶ୍ରୀବାଚସ୍ପତି ମିଶ୍ର ଏହି ପ୍ରଶସ୍ତି ରଚନା କରିଥିଲେ ।

ସମାପ୍ତ ।

Printed at the Dutta Press, by H.M. Dutta. Cuttack.